# କରମା କଥା

## ପ୍ରଥମ ଭାଗ

ଲେଖକ
ଭଗୀରଥି ନେପାକ

ପ୍ରକାଶକ :
କୋଣାର୍କ ପବ୍ଲିଶର୍ସ
ବିନୋଦ ବିହାରୀ, କଟକ-୨

# କରମା କଥା ( ପ୍ରଥମ ଭାଗ )

ଲେଖକ :

ଭାଗୀରଥି ନେପାକ

ପ୍ରକାଶକ :

ଚନ୍ଦ୍ର ଶେଖର ପାଣ୍ଡ
କୋଣାର୍କ ପବ୍ଲିଶର୍ସ
ବିନୋଦବିହାରୀ, କଟକ ୨

ପ୍ରଥମ ପ୍ରକାଶ :

୧୯୮୭

ମୁଦ୍ରଣ :

କୋଣାର୍କ ପ୍ରିଣ୍ଟର୍ସ
ଖଟ୍ବିନ୍ ସାହି
କଟକ-୮

ମୂଲ୍ୟ : ୪-୧୫
( ଚାରିଟଙ୍କା ପନ୍ଦର ପଇସା ମାତ୍ର )

# ଭୂମିକା

ଓଡ଼ିଶା ଏକ ବଡ଼ ଦେଶ । ଏ ଦେଶରେ ଅନେକ ଲୋକ ରହନ୍ତି । ସେମାନେ ଓଡ଼ିଆ ଛଡ଼ା ଆହୁରି ଅନେକ ଭାଷା କହନ୍ତି । ସେମାନଙ୍କର ଧର୍ମ ବି ଅଲଗା ଅଲଗା । ସେମାନେ ସମସ୍ତେ ଓଡ଼ିଆ ।

ଓଡ଼ିଶାରେ ଆଦିବାସୀ ବା ବନବାସୀଙ୍କ ସଂଖ୍ୟା ଅଧିକ । ପ୍ରତି ଚାରିଜଣରେ ଜଣେ ହେଉଛନ୍ତି ଆଦିବାସୀ । ଓଡ଼ିଶାର ପଶ୍ଚିମ ଭାଗରେ ଏମାନେ ବହୁ ସଂଖ୍ୟାରେ ବାସ କରିଥାନ୍ତି ।

ଆଦିବାସୀମାନଙ୍କର ନିଜର ପୂଜା ପାର୍ବଣ, ଓଷା ଆଦି ରହିଛି । ଏମାନେ ଅଲଗା ଭାବରେ ଏହା ପାଳନ୍ତି । ଏମାନଙ୍କ ଦେବଦେବୀମାନେ ବି' ଅଲଗା । ଏହି ଦେବ ଦେବୀମାନେ ବ୍ରାହ୍ମଣ ପୁରୋହିତଙ୍କ ହାତରୁ ପୂଜା ପାଆନ୍ତି ନାହିଁ । ଆଦିବାସୀମାନେ ଏମାନଙ୍କୁ ପୂଜା କରନ୍ତି । ଦେବଦେବୀଙ୍କୁ ଖୁସି କରିବା ପାଇଁ ଆଦିବାସୀ ସ୍ତ୍ରୀ ପୁରୁଷମାନେ ନାଚନ୍ତି ଓ ଗାଆନ୍ତି ।

ପଶ୍ଚିମ ଓଡ଼ିଶାରେ ରହୁଥିବା ଆଦିବାସୀମାନେ କର୍ମା, ଡାଲ୍‌ଖାଇ ଆଦି ପର୍ବ ପାଳନ କରିଥାନ୍ତି । ଏହା ଓଡ଼ିଶାର ପୂର୍ବ ଅଞ୍ଚଳରେ ଦେଖିବାକୁ ମିଳେ ନାହିଁ । ପୂର୍ବ ଓଡ଼ିଶାରେ ରଜ, କୁଆଁର ପୂନେଇ ପର୍ବ ପରି ପଶ୍ଚିମ ଓଡ଼ିଶାର ଆଦିବାସୀମାନଙ୍କର କର୍ମା, ଡାଲ୍‌ଖାଇ ପର୍ବ ପ୍ରଧାନ ।

ଏ ବହିରେ କର୍ମା ପୂଜାରେ କୁହା ଯାଉଥିବା କର୍‌ମା କଥା' ଦିଆ ଯାଇଛି । ଏକଥା ଅନେକ ଧରଣର ।

'କର୍‌ମା କଥା'ରେ କରମ୍‌ସାଣୀଙ୍କୁ ପୂଜା କରିବାକୁ କୁହାଯାଏ । ଏହି ପୂଜା କରି କିଏ କେଉଁ ଉପକାର ପାଇଲା, ତାହା ଜଣାଇ ଦିଆଯାଏ । ପୂଜା ନକଲେ କିପରି ଖରାପ ହୁଏ କୁହାଯାଏ । କର୍‌ମା ପୂଜା 'କରମ୍' ଦେବୀଙ୍କ ପୂଜା । କେହି କେହି ଏହାକୁ କରମ୍‌ସାଇଁଙ୍କ ପୂଜା ବୋଲି କହନ୍ତି ।

ଭଲ କର୍ମ ବା କାମକଲେ ଭଲ ଫଳ ମିଳେ ଓ ଖରାପ କାମ କଲେ ଖରାପ ଫଳ ମିଳେ ବୋଲି କର୍‌ମା କଥା-ମାନଙ୍କରୁ ଜଣାଯାଏ ।

ଏ ପୂଜା ଆଦିବାସୀମାନଙ୍କୁ ଏକାଠି କରେ । କରମା ନାଚ ଆଦିବାସୀ ପୁଅଝିଅଙ୍କୁ ମିଳାମିଶା କରିବାର ସୁଯୋଗ ଦିଏ । ଏହି ପୁଅଝିଅମାନେ ମନ ମାନିଲେ ବିବାହ କରି ଏକାଠି ହୁଅନ୍ତି ।

ଏବେ କରମା ପର୍ବ କେବଳ ଆଦିବାସୀମାନଙ୍କ ଭିତରେ ରହି ନାହିଁ । ଅଣ ଆଦିବାସୀମାନେ ମଧ୍ୟ ଏ ପୂଜା କଲେଣି । ଏହା ଆଦିବାସୀ ଓ ଅଣଆଦିବାସୀମାନଙ୍କର ଏକତା ବଢ଼ାଇଛି ।

ଲେଖକ



# ସୂଚୀ

| ବିଷୟ | ପୃଷ୍ଠା |
|---|---|
| କରମା ପର୍ବ | ୧ |
| ସାଧବ କଥା | ୭ |
| ବିଂଝାଲ ବୁଢ଼ା କଥା | ୧୦ |
| ମିର୍ଧା ବୁଢ଼ା କଥା | ୧୪ |
| କରମ ଓ ଧରମ କଥା | ୨୦ |

# କର୍ମା ପର୍ବ

'କରମା' ପଶ୍ଚିମ ଓଡ଼ିଶାର ଆଦିବାସୀମାନଙ୍କର ଏକ ମୁଖ୍ୟ ପର୍ବ ।

ଏ ପର୍ବ ଖଡ଼ିଆ, କିସାନ, ମିର୍ଦ୍ଧା, କୋଲହ, କୁଲି, ଗଣ୍ଡ, ବିଂଝାଲ, ହୋ, ମୁଣ୍ଡା, ଓରାଂ, ଶବର ଆଦି ଆଦିବାସୀ ଲୋକମାନେ ପାଳନ କରନ୍ତି ।

କର୍ମା ପର୍ବରେ 'କରମ୍‌ସାନି'ଙ୍କୁ ପୂଜା କରାଯାଏ ।

ଦେବୀ କରମ୍‌ସାନି, ପୁଅଝିଅ, ସୁଖ ଓ ସୌଭାଗ୍ୟ ଦିଅନ୍ତି । ଏହାଙ୍କୁ 'କରମ୍‌ରାନି' ଭାବରେ ମଧ୍ୟ ପୂଜା କରାଯାଏ । କେହି କେହି 'କରମ୍‌ସାନି'ଙ୍କୁ 'କରମ୍‌ସାଇଁ' ଭାବରେ ପୂଜା କରିଥାନ୍ତି ।

କର୍ମା ପର୍ବ ସୋନପୁର, ବଲାଙ୍ଗୀରଠାରୁ ଫୁଲବାଣୀ ଯାଏ ପାଳନ କରାଯାଏ ।

ଭାଦ୍ରବ ମାସ ଶୁକ୍ଳପକ୍ଷ ଏକାଦଶୀ ଦିନ ଏ ପର୍ବ ଆରମ୍ଭ ହୁଏ । ଏହାପରେ ଏହା ଅଶିଣ ମାସ ଯାଏ ଚାଲେ । ଆଦିବାସୀମାନଙ୍କର ଏହା 'କରମା ଋତୁ' ।



ଭାଦ୍ରବ ଶୁକ୍ଳ ଏକାଦଶୀ ଦିନ ସଂଜବେଳେ କରମା ପର୍ବ ଆରମ୍ଭ ହୁଏ ।

ମାଦଲିଆ 'ମାଦଲ' ବଜାଏ । ଯୁବକ ଯୁବତୀମାନେ ଏକାଠି ପାଖ ବଣକୁ ଯାଆନ୍ତି । ଅନ୍ୟମାନେ ବି ସଙ୍ଗରେ ଯାଆନ୍ତି । ବଣରେ ସେମାନେ କରମ୍‌ସାନୀଙ୍କ କରମ୍‌ଗଛ ଠାବ କରନ୍ତି । ଶାଳ, ହଲନ୍ ବା ଅଁଳା ଗଛକୁ କରମ୍ ସାନୀଙ୍କ ଗଛ କୁହାଯାଏ ।

ଆଦିବାସୀ ପୂଜକ 'ଦେହେରୀ' ସେହି ଗଛକୁ ପୂଜା କରେ । ତାକୁ ପାଣିରେ ଧୋଇ ସିନ୍ଦୂର ଲଗାଏ ଓ ଭୋଗ ଦିଏ ।

ତାପରେ ସେ ଗଛ 'କରମା ଗଛ' ହୋଇଯାଏ ।

ସେହି ଗଛରୁ ଡାଳ କଟାଯାଏ । ତାକୁ ନୂଆ ଲୁଗା ପିନ୍ଧାଯାଏ । ତାପରେ ମାଦଳ ବଜାଇ, ଗୀତ ଗାଇ ଗାଇ ସମସ୍ତେ ଗାଁକୁ ଫେରନ୍ତି ।

ଆଗରୁ ଗାଁ ମଝିରେ ବେଦୀ କରାଯାଇଥାଏ । ବେଦୀ ମଝିରେ ଗାତ ଖୋଳା ଯାଇଥାଏ । ଗାତ ତଳେ ନୂଆ ମାଟି ହାଣ୍ଡି ଥାଏ । ସେହି ହାଣ୍ଡିରେ ଧାନ ଭରି ଦିଆଯାଇଥାଏ । ମାଟି ହାଣ୍ଡିରେ କର୍‌ମା ଡାଳ ପୋତାଯାଏ ।



ଦେହେରୀ ପୋତା ହୋଇଥିବା କରମାଡାଳକୁ ପୂଜା କରେ । କୁକୁଡ଼ା ବଳି ଦିଏ । ପିଠା ଓ ମଦ ବି ଭୋଗ ହୁଏ ।

କର୍ମା ଡାଲ ଆଗରେ ପାଣି ଭର୍ତ୍ତି ମାଟି କଳସ ବସିଥାଏ । ତାର ପାଖରେ ଦୀପ ଜଳୁଥାଏ । ସେ ଦୀପ ମହଦରେ ଜଳେ ।

କରମାଡାଲ 'କରମ୍‌ସାନି' ଭାବରେ ପୂଜା ହୁଏ ।

କେହି କେହି ଏହି ଡାଲକୁ କର୍ମା ଗୋସାଇଁ, କରମାସାଇଁ, କରମ୍‌ରାଜା, କରମ୍‌ରାନୀ ବୋଲି କହନ୍ତି ।

କରମ୍‌ସାନି ପୁଅ ଝିଅ, ଭଲ ଫସଲ, ଧନ ଆଦି ଦିଅନ୍ତି ବୋଲି କୁହାଯାଏ ।



ପୂଜା ପରେ କର୍ମା କାହାଣୀ ବା କର୍ମା କଥା କୁହାଯାଏ । ଏହା ଆଦିବାସୀ ପୁରୋହିତ ଦେହେରୀ, ଝାଙ୍କର ବା ଅନ୍ୟ କେହି ମୁଖିଆ ଲୋକ କହନ୍ତି ।

କର୍ମା କଥା ବା କାହାଣୀ ଗୋଟିଏ ନୁହେଁ ଅନେକ । ଏ କେତେ ପ୍ରକାର କଥା କହେ ।

କର୍ମା କଥାରେ କରମ୍‌ସାନୀଙ୍କ ମହିମା କଥା କୁହାଯାଏ ।

ଏହାକୁ ଆଦିବାସୀ ଗାଁର ସମସ୍ତେ ମନ ଦେଇ ଶୁଣନ୍ତି ।

କଥା ଶୁଣିବା ପରେ 'କର୍ମା ଡାଳ'କୁ ମୁଣ୍ଡିଆ ମାରନ୍ତି । ଏହାପରେ ସମସ୍ତେ ଭୋଗ ଖାଆନ୍ତି । ମଦ ପିଅନ୍ତି । ପରେ ପରେ କର୍ମା ନାଚ, କର୍ମା ଗୀତ ହୁଏ । ମାଦ୍‌ଲିଆ ମାଦଲ୍ ବଜାଇ ନାଚେ ଓ ନଚାଏ । ଏଥିରେ ପୁଅଝିଅମାନେ ଏକାଠି ନାଚନ୍ତି ଓ ଗାଆନ୍ତି । ରାତିସାରା ନାଚ ଗୀତ ଚାଲେ ।

ସକାଳେ କର୍ମା ଡାଳକୁ ଗାଁ ସାରା ବୁଲାଯାଏ । ତାପରେ ନଈ, ପୋଖରୀ ବା ଝରଣାରେ ଭସାଇ ଦିଆଯାଏ । ସମସ୍ତେ ଗାଧୋଇ ଘରକୁ ଫେରନ୍ତି ।



# ସାଧବ କଥା

ଜଣେ ସାଧବ ଥିଲା । ତାର ସାତ ପୁଅ, ସାତ ବହୂ, ସାତ ଝିଅ । ଘରେ ଅନେକ ଧନ । ତାକୁ ସମସ୍ତେ ଜାଣିଥିଲେ ।

ଦିନେ ସାଧବ ବୁଢ଼ା ବେପାର କରିବାକୁ ବାହାରିଲା । ବୋଇତ ସଜା ହେଲା । ଖେକ ଲଡ଼ୁ ଓ ଶୋଷ ଲଡ଼ୁ ନେଇ ସେ ବୋଇତରେ ବସି ଚାଲିଗଲା ।

ବୋଇତରେ ଅନେକ ଜିନଷ ଥିଲା । ତାକୁ ବିକ ସାଧବ ବୁଢ଼ା ବହୁତ ଲାଭ କଲା । ବହୁତ ଧନ ନେଇ ଘରକୁ ଫେରିଲା ।



ଘର ପାଖରେ ବୋଇତ ଲାଗିଲା । ସେ ଘର ଲୋକଙ୍କୁ ଖବର ପଠାଇଲା । ବୋଇତ ବନ୍ଦା ହେଲେ ଘରକୁ ଫେରିବା କଥା ।

ସାଧବ ବୁଢ଼ା ଅନେଇ ରହିଲା । ବେଳ ଗଡ଼ିଗଲା । ତଥାପି କେହି ଆସିଲେ ନାହିଁ । ସାଧବବୁଢ଼ା ରାଗିଯାଇ ଘରକୁ ଗଲା । ଦେଖିଲା, ଘରେ କେହି ନାହିଁ । କବାଟ ପଡ଼ିଛି ।

ଗାଁ ମୁଣ୍ଡରେ ମାଦଲ୍ ବାଜୁଥିଲା । ବୁଢ଼ୀ ସେଠାକୁ ଗଲା । ଦେଖିଲା, କରମା ବେଦୀ ପାଖରେ କରମା ନାଚ ହେଉଛି ।



ପୁଅମାନେ 'ମାଦଲ' ବଜାଉଛନ୍ତି । ବହୂମାନେ, ଝିଅମାନେ କରମା ଗୀତ ଗାଇ ନାଚୁଛନ୍ତି । କେତେ ଲୋକ ଜମା ହୋଇଛନ୍ତି ।

ବୁଢ଼ା ଏହା ଦେଖି ଆହୁରି ରାଗିଗଲା । ଆଗ ପଛ ବିଚାର କଲା ନାହିଁ । ପୂଜା ବେଦୀକୁ ଗୋଡ଼ରେ ଭାଙ୍ଗିଦେଲା । ମାଦଲ୍ ଫଟାଇ ଦେଲା ।

ସାଧବ ବୁଢ଼ାର ପୁଅଝିଅ ଓ ବହୂମାନେ ମନ କଷ୍ଟ କଲେ । ଗାଁ ଲୋକଙ୍କ ମନ ଖରାପ ହେଲା ।

ଏହା ଦେଖି କରମ୍‌ସାନୀ କୋପ କଲେ । ତାଁ ବୋଇତକୁ ମହି ଦରିଆକୁ ଭିଡ଼ି ନେଇ ବୁଡ଼ାଇ ଦେଲେ । ସବୁ ଧନ ବୁଡ଼ିଗଲା ।

ଏଣେ ତାଁ ଗୁହାଲର ଗାଈ ବଲଦମାନେ ଚରିବାକୁ ଯାଇ ଫେରିଲେ ନାହିଁ । ଫସଲ ହେଲା ନାହିଁ । ଘର ଛାର ଖାର ହେଲା ।

ଏହା ଦେଖି ସାଧବ ବୁଢ଼ାର ମଥା ଘୂରିଇ ଗଲା । ସେ ଦେହେରୀ ପାଖକୁ ଗଲା । ତାର ଦୁଃଖ କଥା ଗୁହାରିଲା ।

ଦେହେରୀ ସବୁ କଥା ଶୁଣିଲା । କହିଲା, କରମ୍‌ସାନୀ ପାଖରେ ଦୋଷ କଲ । ତାଙ୍କ ବେଦ ଉର୍ଗି ଦେଲ । ଅପରାଧ ହେଲା । ସେ ତୁମକୁ କୋପ କଲେ । ସେଥିପାଇଁ ଏପରି ହେଲା ।

ସାଧବ ବୁଢ଼ା ପଚ୍ରିଲା, ଏବେ କଣ କରିବ ?

ଦେହେରୀ କହିଲା, ପୁଣି କର୍‌ମା ପୂଜା କର । ସବୁ ପାଇବ ।

ସାଧବ ବୁଢ଼ା କର୍‌ମା ପୂଜା କଲା । ଦେବୀଙ୍କୁ ଗୁହାରି କଲା । କହିଲା, ମୁଁ ଅଧମ । ମୋତେ ଦୟା କର ।

ବୁଢ଼ାର ସାତପୁଅ ମାଦଲ୍ ବଜାଇଲେ । ସାତ ବହୂ ସାତ ଝିଅ ନାଚଲେ । ବୁଢ଼ା ବୁଢ଼ୀ ବି ନାଚଲେ ।

ସାତଦିନ ଭିତରେ ସବୁ ହେଲା । ବୋଇତ ତା'ମନକୁ କୂଳରେ ଲଗିଲା । ଗାଈ ବଳଦ ଗୁହାଲକୁ ଫେରିଲେ ।

ସାଧବ ବୁଢ଼ା ଖୁସି ହେଲା । ସବୁବର୍ଷ କର୍ମା ପୂଜା କଲା ।



# ବଂଖାଳ ବୁଢ଼ା କଥା

ଗୋଟିଏ ଗାଁରେ ବଂଖାଲ ବୁଢ଼ାଟିଏ ଥିଲା । ଘରେ ତାର ଘରଣୀ ଓ ପୁଅଝିଅ ଥିଲେ । ସେ ଦୁଃଖରେ ଚଳୁଥିଲା । ଯାହା କମାଣି କଲେବି ପୂରୁ ନ ଥିଲା ।

ବୁଢ଼ା ଧନୀ ହେବାକୁ ଚାହୁଁଥିଲା । ଚାହିଁଲେ ତ ସବୁ ହୁଏ ନାହିଁ ! ସେ ଅନୁସାରେ କାମ କରିବାକୁ ହୁଏ । ବୁଢ଼ା ସେ କଥା ଜାଣି ନ ଥିଲା ।

ଦିନେ ବୁଢ଼ା ଭାବିଲା, ସେ ଗାଁ ସେ ଘର ତାକୁ ସୁହାଁଉ ନାହିଁ । ସେଥିପାଇଁ ଅଭାବ ହେଉଛି । ତେଣୁ ଗାଁ ଛାଡ଼ିଲେ ଭଲ ହେବ । ଆଉ ଏକ ଗାଁରେ ରହିବ ।

ପରଦିନ କାଉ କୋଇଲି ଉଠିବା ଆଗରୁ ପୁଅ ଝିଅଙ୍କୁ ନେଇ ଘର ଛାଡ଼ିଲା । ଗଲାବେଳେ ସେ ଘର ଭିତରେ ଦୀପଟିଏ ଜାଳି ଦେଇ ଗଲା ।

ବଂଖାଲ ବୁଢ଼ା ଆଉ ଏକ ଗାଁରେ ଯାଇ ରହିଲା । ସେ ଭାବିଥିଲା, ସେଠାରେ ରହିଲେ ଧନୀ ହେବ । କିନ୍ତୁ ବରଷେ କାଳ ରହିବା ପରେ ବି' କିଛି ହେଲା ନାହିଁ । ଭାବିଲା, ସେ ଗାଁ ସେ ଘର ବି' ତା' ପାଇଁ ଭଲ ନୁହେଁ ।

ଏହିପରି ଭାବରେ ବୁଢ଼ା ଗାଁ ପରେ ଗାଁ, ଘର ପରେ ଘର ବୁଲିଲା । ବରଷେ ଛ' ମାସ ରହି ଜାଗା ବଦଳ କଲା । କିନ୍ତୁ ଯେଉଁ କଥାକୁ ସେହି କଥା । ଯେଉଁ ଘର ଛାଡ଼ି ଚାଲିଯାଏ, ସେଇଠି ଦୀପଟିଏ ଜାଳି ଦେଇ ଯାଏ ।

ଶେଷରେ ଗୋଟିଏ ଗାଁ ଛାଡ଼ିଦେଇ ଗଲାବେଳେ, ବୁଢ଼ା ତାର ହାତବାଡ଼ି ଛାଡ଼ିଦେଇ ଗଲା । ଯାଉ ଯାଉ ବାଟରେ ସେ କଥା ମନେ ପଡ଼ିଲା । ବାଡ଼ି ଉପରେ ବୁଢ଼ାର ଭାରି ଲୋଭ । ବାଡ଼ି କଥା ମନେ ପଡ଼ିବାରୁ ତାକୁ ଖାଲି ଖାଲି ଲାଗିଲା । ବୁଢ଼ାର ମନ ଭଲ ରହିଲା ନାହିଁ । ତେଣୁ ସେ ପୁରୁଣା ଘରକୁ ଫେରିଲା ।

ବାଂଝାଲ ବୁଢ଼ା ଦେଖିଲା, ଘର ଭିତରେ ସେ ଜାଳିଦେଇ ଯାଇଥିବା ଦୀପ ଜଳୁଛି । ସେ ଦୀପରୁ ତେଲ ନେଇ ଅଜଣା ବୁଢ଼ାଟିଏ ତଳି ପାଦରେ ଘଷୁଛି । ତାର ତଳିପାଦ ଫାଟି ଆଁ କରିଛି ।

ଏହା ଦେଖି ବାଂଝାଲ ବୁଢ଼ା କାବା ହେଲା । ସେ ସେହି ଅଜଣା ବୁଢ଼ା ପାଖକୁ ଗଲା । କହିଲା, ତୁମେ କିଏ ? ଦୀପରୁ ତେଲ ନେଇ ତଳି ପାଦରେ ଲଗାଉଛ କାହିଁକି ?

ଅଜଣା ବୁଢ଼ା କହିଲା, ତୁ କଣ ମୋତେ ଜାଣି ନାହୁଁ ? ପାଦ କଣ ହେଲାଣି ଭଲ କରି ଦେଖ ।

ବାଂଝାଲ ବୁଢ଼ା କିଛି କହି ପାରିଲା ନାହିଁ ।



ଅଜଣା ବୁଢ଼ା କହିଲା, ମୁଁ ତୋର କରମ୍ । ମୁଁ ତୋର ଭାଗ୍ୟ । ତୋ ପାଖରେ ସବୁବେଳେ ଥାଏ । ତୋ ସଙ୍ଗରେ ଯା' ଆସ କରେ । ତୋ ସଙ୍ଗରେ ବୁଲି ବୁଲି ତଳପାଦ ଫାଟି ଗଲାଣି । କଣ ଆଉ କରିବ ? ପାଦ ନରମ ହେବ ବୋଲି ସେକୁଛି । ତୁ ଏଇଠି ତୋର ହାତବାଡ଼ ଛାଡ଼ି ଯାଇଥିଲୁ । ମୁଁ ବସି ଜଗିଛି ।

ବଂଖାଲ ବୁଢ଼ା ସେହି ଅଜଣା ଲୋକର ସବୁ କଥା ବୁଝିଗଲା । ମନକୁ ମନ କହିହେଲା, କରମ୍ ଦେବତା 'ଭାଗ୍ୟ' । ସେ ସବୁବେଳେ ପାଖରେ ଥାଏ । ଯେମିତି କାମ, ସେମିତି ଭାଗ୍ୟ । ତାକୁ ବୋକାମାନେ ଖୋଜି ବୁଲନ୍ତି । ସେ ବୋକା ବୋଲି ଗାଁକୁ ଗାଁ ବୁଲୁଥିଲା ।

ଏଥର ବଂଝାଲ ବୁଢ଼ା ସେହି ପୁରୁଣା ଗାଁରେ, ପୁରୁଣା ଘରେ ରହିଗଲା । ପରିବାର ସେଇଠି ରହିଲେ । ଆଉ କୁଆଡ଼େ ଗଲେ ନାହିଁ ।

ବଂଝାଲ ବୁଢ଼ା କାମରେ ମନ ଦେଲା । ଆଉ କିଛି ଭାବିଲା ନାହିଁ । କିଛିଦିନ ପରେ ତାର ଭାଗ୍ୟ ବଦଳି ଗଲା । ଅନେକ ଧନ ରୋଜଗାର କଲା । ବାଡ଼ିକୁ 'କରମ୍‌ସାନି' ମାନି ପୂଜା କଲା । ସୁଖରେ ରହିଲା ।



# ମିର୍ଧା ବୁଢ଼ା କଥା

ବହୁଦିନ ତଳର କଥା—

ଗୋଟିଏ ମିର୍ଧା ଜାତର ବୁଢ଼ା ଥିଲା । ତାର ସାତ ପୁଅ । ସେମାନେ ବେପାର ବଣିଜ କରୁଥିଲେ ।

ଥରେ ସେମାନେ ବଣିଜ କରିବାକୁ ଗଲେ । ଭଲ ଲାଭ ହେଲା । ଅନେକ ଜିନିଷ ନେଇ ଘରକୁ ଫେରିଲେ ।

ସେମାନେ ଯେଉଁଦିନ ଘରକୁ ଫେରିଲେ, ସେଦିନ କର୍ମା ପରବ । ଭୁଦୋ ବା ଭାଦ୍ରବ ମାସର ଶୁକ୍ଳ ଏକାଦଶୀ । ମାଦଲ ବାଜୁଥିଲା । ଗାଁର ପୁଅଝିଅମାନେ କର୍ମା ନାଚୁଥିଲେ । ଗାଁ ଦୁଲୁକୁ ଉଠୁଥିଲା ।



ସାତଭାଇ ଗାଁ ପାଖରେ ଶଗଡ଼ ରଖି ଡାକଲେ ।

ଘରକୁ ଖବର ପଠାଇଲେ । ଘରର ଝିଅ ବୋହୂମାନେ ଆସି ବନ୍ଦାଣ କଲେ ଯାଇ ଘରକୁ ଯିବେ ।

ବଡ଼ଭାଇ ସାନଭାଇକୁ କହିଲା, ତୁ ଯାଇ ଘରେ ଖବର ଦେଇଆ । ସହଳ ଆସିବେ ।

ବଡ଼ଭାଇର କଥାମାନି ସାନଭାଇ ଖବର ଦେବାକୁ ଘରକୁ ଗଲା । ସେ ଦେଖିଲା, ଘରେ କବାଟ ପଡ଼ିଛି । କେହି ନାହାନ୍ତି । ମାଦଲ ବାଜା ଡୁହାଇ ଡୁହାଇ ବାଜୁଛି । ସେ ବାଜା ପାଖକୁ ଗଲା ।

ସାନଭାଇ ଦେଖିଲା, ଗାଁ ମୁଣ୍ଡରେ କରମା ନାଚ ହେଉଛି । ପୁଅ ପିଲାମାନେ ପାଗ ଭିଡ଼ି ମାଦଲ ବଜାଇ ନାଚୁଛନ୍ତି । ଝିଅମାନେ ମନଖୁସିରେ ଗୀତ ଗାଇ ନାଚୁଛନ୍ତି । ବେଦିରେ କରମା ଡାଳ ପୋତା ହୋଇଛି ।



ସାନଭାଇ ନାଚ ଦେଖି ରହି ପାରିଲା ନାହିଁ ।

ସେ ପାଗଭିଡ଼ି ନାଚବାକୁ ବାହାରି ପଡ଼ିଲା । ନାଚରେ ଏତେ ଭୋଳ ହୋଇଗଲା ଯେ, ବଡ଼ଭାଇ କଥା ଭୁଲିଗଲା ।

ସାନଭାଇ ଖବର ଦେଇ ଫେରିଲା ନାହିଁ । ବଡ଼ଭାଇ ଜଣକ ପରେ ଜଣକୁ ଘରକୁ ପଠାଇଲା ।

ଜଣକ ପରେ ଜଣେ ହୋଇ ଛଅ ଭାଇ ଯାକ ଗାଁକୁ ଆସି ଆଉ ଶଗଡ଼ ପାଖକୁ ଫେରିଲେ ନାହିଁ । ସେମାନେ ପାଗ ଭିଡ଼ି କରମା ନାଚରେ ମାତିଗଲେ । ବଡ଼ଭାଇ କଥା ଭୁଲିଗଲେ ।



ତେଣେ ଶଗଡ଼ ଛିଡ଼ା ହୋଇ ରହିଲା ।

ବଡ଼ଭାଇ ରାଗିଯାଇ ଗାଁକୁ ଆସିଲା । ଦେଖିଲା, ଗାଁ ମୁଣ୍ଡରେ କରମା ନାଚ ହେଉଛି । ଅଛି ବୋହୂମାନେ କରମା ନାଚୁଛନ୍ତି । ଛ'ଭାଇଯାକ ମାଦଲ ବଜାଉଛନ୍ତି ।

ବଡ଼ ଭାଇର ରାଗ ଦେଖେ କିଏ ? ସେ କରମା ବେଦି ଉପରକୁ ଗଲା । କରମା ଡାଳକୁ ଉପାଡ଼ି, ବହୁ ଦୂରକୁ ନେଇ ଫୋପାଡ଼ି ଦେଲା । କରମା ନାଚ ଭାଙ୍ଗି ଗଲା ।

ଏହା ଦେଖି ସାନଭାଇ କରମା ଡାଳ ଖୋଜିବ ବୋଲି ଚାଲିଗଲା । ସେ ଆଉ ଘରକୁ ଫେରିଲା ନାହିଁ ।

ଏହିପରି ଭାବରେ ଅନେକ ଦିନ ଚାଲିଗଲା । ସାନ ଭାଇ ଫେରିଲା ନାହିଁ ।

ଏଣେ କର୍ମସାନି ମିର୍ଧା ଉପରେ କୋପ କଲେ । ତାର ଜିନିଷ ଭରି ହୋଇଥିବା ଶଗଡ଼ମାନ କୁଆଡ଼େ



ଚାଲିଗଲା । ଫସଲ ଭଲ ହେଲା ନାହିଁ । ଧନୀ ପରିବାରଟା ଚାହିଁ ଚାହିଁ ଗରିବ ହୋଇଗଲେ, ସବୁ ଦଶା ଭୋଗିଲେ ।

ସବା ସାନଭାଇ କର୍ମା ଡାଳ ଖୋଜି ପାଇଲା ନାହିଁ । ସେ 'କାରାମ୍ ରାଜା' ପାଖରେ ଗୁହାରି କଲା । 'କାରାମ୍ ରାଜା' ତା' ଗୁହାରି ଶୁଣିଲେ । ସେ ମିର୍ଧା ପରିବାରର ଶଗଡ଼ ଓ ଜିନିଷମାନ ଫେରାଇ ଦେଲେ ।

ଏଣେ ବଡ଼ ଭାଇକୁ ଆକାଶବାଣୀ ହେଲା । କୁହାଗଲା, 'କାରାମ୍ ରାଜା' ବା କର୍ମା ରାଜାର ପୂଜା କର । ନହେଲେ ପୁଣି ଦଶା ଭୋଗିବୁ । ଦୁଧ ନ ଦେଇ ଦହି ଦେବୁ । ତା'ସଙ୍ଗରେ ଅରୁଆ ଚାଉଳ, କଖାରୁ କାକୁଡ଼ି ପୂଜା କରିବୁ ।



ଠିକ୍ ଏତିକିବେଳେ, ସାନଭାଇ ଖୋଜି ଖୋଜି

କର୍ମା ଡାଳ ପାଇଲା । ଖୁସିରେ ସେ ଡାଳ ନେଇ ଘରକୁ ଫେରିଲା ।

ବଡ଼ ଭାଇ ନିଜ ହାତରେ ବେଦ୍ଧ କଲା । ସାନଭାଇ ହାତରୁ କର୍ମା ଡାଳ ନେଇ ପୋତିଲା । ଗାଁ ବାଲାଙ୍କୁ କହି କର୍ମା ପୂଜା ଓ ନାଚ ଗୀତ କରାଇଲା । ସେ ଦୁଧ ନ ଦେଇ ଦହି ଦେଲା । ଅରୁଆ ଚାଉଳ, କଖାରୁ, କାକୁଡ଼ି ଆଣି ଭୋଗ କଲା ।

ମିର୍ଧା ପୁଅଝିଅ ଓ ବହୂମାନେ କର୍ମା ଗୀତ ଗାଇ ନାଚଲେ । ସମସ୍ତେ ସୁଖରେ ରହିଲେ ।



# କରମ୍ ଓ ଧରମ୍ କଥା

କରମ୍ ଓ ଧରମ୍ ଦୁଇ ଭାଇ । ଆଦିବାସୀ ଲୋକ । ବଣ ପାଖରେ ଗୋଟିଏ ଗାଁରେ କୁଡ଼ିଆ କରି ରହୁଥିଲେ । ବାହା ହୋଇ ନ ଥିଲେ । ମାଆ ବୁଢ଼ୀ ସାଙ୍ଗରେ ଏକାଠି ଥିଲେ ।

ମାଆ ବୁଢ଼ୀ ରାନ୍ଧିବାଢ଼ି ଦିଏ । ଆଉ କିଛି ପାରେ ନାହିଁ । ବଳ ଖସି ଯାଇଥିଲା । କାମଧାମକୁ ଯାଉ ନ ଥିଲା ।

କରମ୍ ଓ ଧରମ୍ ଭାରି ଗରିବ । ବଡ଼ ଦୁଃଖରେ ଚଳୁଥାନ୍ତି । ବଣରେ ବୁଲି ଫୁଲ, ଫଳ, କନ୍ଦା ଖୋଜି ଆଣନ୍ତି । ବେଳେ ବେଳେ ଶିକାର କରନ୍ତି । ଯାହା ପାଆନ୍ତି, ମାଁକୁ ଦିଅନ୍ତି । ଦିନେ ଦିନେ କିଛି ମିଳେ ନାହିଁ । ଭୋକରେ ରହନ୍ତି ।

ଥରେ ଖରା ଦିନ ଆସିଲା । ଭାରି ଖରା ହେଲା । ଖରା ସଙ୍ଗକୁ ଗରମ ପବନ । ଝରଣା ପୋଖରୀ ଶୁଖିଗଲା । ଗଛଲତା ମରିଗଲେ । କରମ୍ ଓ ଧରମ୍ ଫଳମୂଳ କି ଶିକାର ପାଇଲେ ନାହିଁ । ଭୋକରେ ରହିଲେ । କିଛିଦିନ ଭୋକ ସହିବା ପରେ ଆଉ ପାରିଲେ ନାହିଁ ।

ପାଖ ଗାଁରେ ସାହୁକାର ଜଣେ ଥାଏ ।



କରମ୍ ଧରମ୍ ଯାଇ ସାହୁକାର ଦୁଆରେ ଛିଡ଼ା ହେଲେ । ସାହୁକାରକୁ କାମ ମାଗିଲେ ।

ସାହୁକାର କାମ ଦେଲା, କିନ୍ତୁ ମୂଲ ଦେଲା ନାହିଁ । ଖାଇବାକୁ ବି ଦେଲା ନାହିଁ । ନାନାକଥା କହି ତଡ଼ି ଦେଲା ।

ଦୁଇ ଭାଇ ଦୁଃଖରେ ନିଜ ଘରକୁ ଫେରିଲେ ।

ଘରେ ମାଁ ବୁଢ଼ୀ ବାଟ ଚାହିଁ ବସିଥାଏ । ସେମାନେ ଖାଲି ହାତରେ ଫେରିବା ଦେଖି କାନ୍ଦିଲା ।

ଦୁଇଭାଇ ବସି ବିଚାର କଲେ । ଜଣେ ବୁଢ଼ୀ ପାଖରେ ରହିବ । ଫଳମୂଳ ଆଣି ପୋଷିବ । ଆଉ ଜଣେ ମୂଲ ଲାଗି ଯିବ ।

॥ ଦୁଇ ॥

ସାନଭାଇ କରମ୍ ମାଆ ବୁଢ଼ୀ ପାଖରେ ରହିଲା । ବଡ଼ଭାଇ ଧରମ୍ ମୂଲ ଲାଗିବାକୁ ଚାଲିଗଲା ।

ଅନେକ ବାଟ ଚାଲିବା ପରେ, ଧରମ୍ ଗୋଟିଏ ଗଛତଳ ଛାଇରେ ହାଲିଆ ମାରିଲା ।



ହାଲିଆ ମାରୁ ମାରୁ ନିଦ ଘୋଟି ଆସିଲା । ଧରମ୍ ଶୋଇ ପଡ଼ିଲା ।

ଧରମ୍ ଯେଉଁ ଗଛ ଛାଇରେ ଶୋଇଥିଲା, ତାହା ଏକ କର୍ମା ଗଛ । 'କରମ୍ ସାଇଁ' ସେ ଗଛରେ ରହୁଥିଲେ, ସେ ସପନରେ କହିଲେ, ଯେଉଁ ଗଛ ତଳେ ଶୋଇଛୁ, ସେହି ଗଛରୁ କର୍ମା ଡାଳ ଭାଙ୍ଗ । ତାକୁ ନେଇ ଗଛତଳେ

ପୋତି ପକା । କର୍ମା ପୂଜା କର । ପୂଜା କରି ସାରି ତିନିଥର କୁହାର କର । ଗଛ ଚାରିପଟେ ଗୀତ ଗାଇ ନାଚ । ପାଖରେ ଥିବା ନଈ କୂଳକୁ ଯିବୁ । ନଈ କୂଳରେ ଗଛବୁଦା ଦେଖିବୁ ତା' ପାଖରେ ଗାଈ ବାଛୁରୀ ଚରୁଥିବେ । ବୁଦା ପଛରେ ବଇଁଶୀ ଥିବ । ବୁଦା ଭିତରେ ପଗଡ଼ି କନା ଥିବ । ଗାଈ ବାଛୁରୀ, ବଇଁଶୀ ଓ ପଗଡ଼ି କନା ନେଇ ଆସିବୁ । ପଗଡ଼ି କନା ଭିଡ଼ି ବଇଁଶୀ ବଜାଇ ନାଚବୁ ।

ଧରମ୍‌ର ନିଦ ଭାଙ୍ଗିଗଲା । ସପନ ଅନୁସାରେ ନଈ କୂଳକୁ ଗଲା । ଦେଖିଲା, ଗାଈ ବାଛୁରୀ ଚରୁଛନ୍ତି । ବୁଦା ପଛପଟେ ବଇଁଶୀ ଅଛି । ବୁଦା ଭିତରେ ପଗଡ଼ିକନା ଅଛି । ସେସବୁ ଜିନିଷ ନେଇ ଆସିଲା । କର୍ମା ଡାଳ ଭାଙ୍ଗି



ପୋତିଲା । ପଗଡ଼ି ଭିଡ଼ି ହେଲା । ବଇଁଶୀ ବଜାଇ ନାଚିଲା । ଏହାପରେ ଗାଈ ବାଛୁରୀ ନେଇ ଘରକୁ ଫେରିଲା ।

ଏଣେ କରମ୍ ସାଇଁଙ୍କ ଦୟାରୁ ମାଁ ଓ ଭାଇ ସୁଖରେ ଥାଆନ୍ତି । ଘରେ ଖାଇବା ଜିନଷ ଭରି ଯାଇଥାଏ । ମାଁ ଓ ଭାଇ ଧରମ୍‌କୁ ଦେଖି ଖୁସି ହେଲେ । ତାକୁ ଘର ଭିତରକୁ ଡାକି ନେଲେ ।

ଧରମ୍ ଓ କରମ୍ ସୁଖରେ ରହିଲେ । ଗାଈ ବାଛୁରୀରେ ଗୁହାଳ ପୂରିଗଲା ।

॥ ତିନି ॥

ବରଷକ ପରେ କରମା ମାସ ଆସିଲା ।



ମାଆବୁଢ଼ୀ ଦେଖିଲା, ସେମାନଙ୍କ ଘର ଚାଳରେ କରମା ଗଛ ଉଠିଛି । ସେ ଭାରି ଖୁସି ହେଲା । ସେ ଦୁଇ ଭାଇଙ୍କୁ ଡାକି ଚାଳର କରମା ଗଛ ଦେଖାଇଲା । କରମା

ଗଛକୁ ଜୁହାର ହେଲ୍ । କହ୍‌ଲା, ତନ୍ନଦନ ପରେ କରମା ପରବ । କରମା ଡାଲ ନେଇ ବେଦ୍‌ରେ ପୋତବ । ଗାଁର ଲୋକଙ୍କ୍ ଡାକ ପୂଜା କରବ । ଗାଁର ପୁଅଝିଅମାନେ କରମା ଗୀତ ଗାଇ ନାଚବେ ।

ତନ୍ନଦନ ପରେ ଭୁଦୋ ମାସର ଶୁକ୍ଳ ଏକାଦଶୀ ତଥି ପଡ୍‌ଲ୍ । ଦୁଇ ଭାଇ କରମା ପୂଜା କଲେ । ମାଦଲ୍



ବଜାଇ ନାଚଲେ । ନାଚ ପରେ ବାହା ହୋଇ ନ ଥିବା ଦୁଇ ପୁଅ କରମା ଡାଲ ନେଇ ଝରଣାରେ ପୋତ ଦେଲେ । ଗାଧୁଆ ପାଧୁଆ ସାର ଘରକୁ ଫେରଲେ । ଗାଁର ଗରବ ପୁଅ ଝିଅଙ୍କୁ ଲୁଗା ଦେଲେ । କରମା ପୂଜା ଶେଷ ହେଲ୍ ।

କିନ୍ତୁ ଏହାପରେ ଆଉ ଏକ ଘଟଣା ଘଟିଲା ।

ଧରମ୍ ନିଡ ଝରଣାକୁ ଧାଇଁଲା । କରମା ଗଛର ଚାରିପଟେ ମାଦଲ୍ ବଜାଇ ନାଚିଲା ।

ଏହିପରି ଭାବରେ ଅନେକ ଦିନ ଚାଲିଗଲା । ଧରମ୍‌ର ନାଚିବା ବନ୍ଦ ହେଲା ନାହିଁ ।

ଏହା ଦେଖି ସାନଭାଇ 'କରମ୍' ରାଗିଗଲା । ସେ ଝରଣାକୁ ଗଲା । କରମା ଗଛ ଉପାଡ଼ି ଝରଣାରେ ଭସାଇ ଦେଲା ।

ଧରମ୍ ମନ ଦୁଃଖରେ ଘରକୁ ଫେରିଲା ।

ଏହା ପରେ ପରେ ଦୁଇ ଭାଇ ଗରିବ ହୋଇ ଆସିଲେ । ଘରେ ଖାଇବାକୁ କିଛି ରହିଲା ନାହିଁ । ଘର ଛପର ହୋଇ ପାରିଲା ନାହିଁ । ଗାଈ ବଳଦ ମରି ହଜି ଗଲେ । ଦୁଇ ଭାଇ ଭାବିଲେ, ଆଉ ସେ ଘରେ ରହିବେ ନାହିଁ । ଆଉ କୁଆଡ଼େ ଚାଲିଯିବେ ।

॥ ଚାରି ॥

କରମ୍ ଓ ଧରମ୍ ଘର ଛାଡ଼ି ଚାଲିଯିବାକୁ ଠିକ୍ କଲେ । ସେମାନେ ଘର ପିଂଡ଼ାରେ ମୁଣ୍ଡରେ ହାତ ଦେଇ ବସିଲେ ।

ଠିକ୍ ଏତିକିବେଳେ, ଜଣେ ଅଜଣା ବୁଢ଼ା ଦୁଇ ଭାଇଙ୍କ ପାଖକୁ ଆସିଲା । ପଚାରିଲା, କଣ ଭାବୁଛ ?

ଦୁଇ ଭାଇ ସବୁ କଥା କହିଲେ ।

ବୁଢ଼ା କହିଲା, କରମା ଡାଳକୁ ମାନିଲ ନାହିଁ । କରମ୍‌ସାଇଁ ରାଗିଛନ୍ତି । ତେଣୁ ଦୁଃଖ ଦେଲେ ।

ଦୁଇଭାଇ ପଚାରିଲେ, ଆମେ କଣ କରିବୁ ?

ଅଜଣା ବୁଢ଼ା କହିଲା, ସମୁଦ୍ରକୁ ଯାଅ । କୂଳରେ କର୍‌ପନ୍‌ ପାହାଡ଼ ଅଛି । ସେଠାରେ କରମସାଇଁ ଅଛନ୍ତି । ତାଙ୍କୁ ଗୁହାରି କର । ସେ ଚାହିଁଲେ ସବୁ ହେବ ।

ଏହା କହି ଅଜଣା ବୁଢ଼ା ଆପଣା ବାଟରେ ଚାଲିଗଲା ।

ଦୁଇଭାଇ ଚାଲି ଚାଲି କର୍‌ପନ୍‌ ପାହାଡ଼କୁ ବାହାରିଲେ । ଅନେକ ବାଟ । ତଥାପି ସେ ଦୁହେଁ ଚାଲୁ-ଥିଲେ । ଖରା, ବରଷା, ଶୀତକୁ ନମାନି ଚାଲିଲେ ।

ବାଟରେ ଦୁଇଭାଇଙ୍କୁ ଭୋକ ଲାଗିଲା । ଗଛରୁ ପାଚିଲା ଫଳ ତୋଳି ଆଣିଲେ । ଭିତରେ ଦେଖିଲା ବେଳକୁ ପୋକ । ଖାଇ ହେଲା ନାହିଁ ।

ଭୋକମାରି ଦୁଇଭାଇ ଚାଲିଲେ ।

ବାଟରେ ପଣସ ଗଛଟିଏ ପଡ଼ିଲା । ଦୁଇଭାଇ ଗଛ ଛାଇରେ ବସି ପଡ଼ିଲେ ।

ପଣସ ଗଛ ପଚାରିଲା, କୁଆଡ଼େ ଯାଉଛ ?

ଆମେ କର୍‌ପନ୍‌ ପାହାଡ଼କୁ ଯାଉଛୁ । ସେଠାରେ କରମସାଇଁଙ୍କୁ ଦୁଃଖ ଜଣାଇବୁ । ଦୁଇଭାଇ କହିଲେ ।

ପଣସ ଗଛ କହିଲା, ଭଲ କଥା । ହେଲା ନ କର ଯାଅ । ତୁମ ଦୁଃଖ ଜଣାଇବା ପରେ ମୋ କଥା ଟିକିଏ କହିବ ।

ତୁମର କି ଦୁଃଖ ? ଧରମ୍ ପଚାରିଲା ।

ମୋର ମୂଳରେ ଜଣେ ଲୋକ ବସିଲା । ବହୁତ ସୁନା ରୂପା ପୋତିଲା । ମୋତେ କହିଲା, ଜଗିଥିବ । ଶହେ ବରଷ ହେଲାଣି ଜଗିଛି । ସେ ଲୋକ ଫେରୁ ନାହିଁ । କରପନ୍ ଦେବତାଙ୍କୁ ପଚାରିବ, ସୁନା ରୂପା କାହାକୁ ଦେବ ? ଆଉ ଜଗି ହେଉ ନାହିଁ । ହଁ, ଆହୁରି ଗୋଟିଏ କଥା । କରପନ୍ ପାହାଡ଼ରେ ଅନେକ ଦେବତା ଅଛନ୍ତି । ସେମାନଙ୍କୁ ଜୁହାର ହେବ ନାହିଁ । ଖାଲି କରମସାଇଁଙ୍କୁ ଜୁହାର ହେବ । ସେ ସବୁଠୁ ବଡ଼ ଦେବତା । ପଣସ ଗଛ କହିଲା ।



କରମ୍ ଓ ଧରମ୍ ପଣସ ଗଛର କଥାରେ ରାଜି ହେଲେ । ସେମାନେ ତାପରେ ଆଗକୁ ଚାଲିଲେ ।

ଆଗରେ ବଡ଼ ବରଗଛଟିଏ ପଡ଼ିଲା । ତା'ଛାଇରେ ବହୁତ ଗାଈ ବଳଦ ଥିଲେ ।

ବରଗଛ ବଡ଼ ପାଟିରେ ପଚାରିଲା, କୁଆଡ଼େ ଯାଉଛ ?

ଧରମ୍ କହିଲା, ଆମେ କରପନ୍ ପାହାଡ଼କୁ ଯାଉଛୁ । କରମ୍ ସାଇଁଙ୍କୁ ଦୁଃଖ ଜଣାଇବୁ ।



ବରଗଛ କହିଲା, ଭଲ କଥା । ତୁମେ ତୁମ ଦୁଃଖ କହିବା ପରେ ମୋର ଦୁଃଖ କହିବ ।

ତୁମର କି ଦୁଃଖ ? ଧରମ୍ ପଚାରିଲା ।

ବରଗଛ କହିଲା, ଥରେ ଜଣେ ଲୋକ ଆସିଲା । ମୋ ଛାଇରେ ବହୁତ ଗାଈ ବଳଦ ଛାଡ଼ି ଦେଇଗଲା । ମୋତେ କହିଲା, ଜଗିଥିବ । ମୁଁ ସେହି ଗାଈ ବଳଦଙ୍କୁ ଜଗିଛି । ଶହେ ବର୍ଷ ହେଲାଣି । ସେ ଲୋକ ଫେରି ନାହିଁ । ମୁଁ ଜଗି ଜଗି ହାଲିଆ ହେଲିଣି । କରମ୍ ସାଇଁଙ୍କୁ ପଚାରିବ, ମୁଁ କଣ କରିବ ? ହଁ, ଆଉ ଗୋଟେ କଥା । କରପନ୍ ପାହାଡ଼ରେ ଅନେକ ଗୁଂଫା । କରମ୍ ସାଇଁଙ୍କ ଗୁଂଫା ସବୁଠୁ ବଡ଼ । ତୁମେ ଆଉ କାହାରି ଗୁଂଫାକୁ ଯିବ ନାହିଁ । ବୁଝି ପଚାରି କରମସାଇଁଙ୍କ ଗୁଂଫାକୁ ଯିବ ।

ଦୁଇ ଭାଇ 'ହଁ' କଲେ । ସେମାନେ ଆଗକୁ ଚାଲିଲେ ।

ଆଗରେ ପିପଳ ଗଛଟିଏ ପଡ଼ିଲା । ପିପଳ ଗଛ ବଡ଼ ପାଟିରେ ପଚାରିଲା, ହେ ଭାଇ ! କୁଆଡ଼େ ଯାଉଛ ?

ଦୁଇ ଭାଇ କହିଲେ, କରପନ୍ ପାହାଡ଼କୁ ଯାଉଛୁ । ସେଠାରେ କରମସାଇଁଙ୍କୁ ଭେଟିବୁ । ଆମର ଦୁଃଖ ଜଣାଇବୁ ।

ପିପଳ ଗଛ କହିଲା, ଭଲ କଥା । ତୁମେ ତୁମ କଥା କହି ସାରିଲେ ମୋ' କଥା କହିବ ।

ତୁମର କି କଥା ? ଧରମ୍ ପଚାରିଲା ।

ପିପଳ ଗଛ କହିଲା, ମୋ କଥା ପଚାର ନାହିଁ । କରମସାଇଁ କହିଗଲେ, ତୋର ଚାରିପଟେ ଯେଉଁ ଜମିତକ ଅଛି, ତାକୁ ଜଗିଥିବୁ । ମୁଁ ନ କହିବା ଯାଏ କାହାକୁ ଦେବୁ ନାହିଁ । ଏତେ ଜମି ଜଗି ଜଗି ହାଲିଆ ହେଲିଣି । ତାଙ୍କୁ ପଚାରିବ, ଏ ଜମିତକ କାହାକୁ ଦେବି । ହଁ, ଆଉ ଗୋଟିଏ କଥା ମନେ ରଖିବ । କରପନ୍ ପାହାଡ଼ ପାଖରେ ଆହୁରି ଅନେକ ଛୋଟ ଛୋଟ ପାହାଡ଼ ଅଛି । ବଡ଼ ପାହାଡ଼ରେ କରମ୍‌ସାଇଁ ରହନ୍ତି । ଅନ୍ୟ ପାହାଡ଼କୁ ନ ଯାଇ ବଡ଼ ପାହାଡ଼କୁ ଯିବ ।

ଦୁଇ ଭାଇ ତାଂ କଥାରେ ରାଜି ହେଲେ । ତାପରେ ଚାଲିବାକୁ ଲାଗିଲେ ।

ଦୁଇଦିନ ଦୁଇରାତି ଚାଲିବାପରେ ସମୁଦ୍ର ପଡ଼ିଲା । ତାର କୂଳରେ କରପନ୍ ପାହାଡ଼ ଆହୁରି ଅନେକ ପାହାଡ଼ ଥିଲା । ସେମାନେ ଆଉ କୁଆଡ଼େ ଗଲେ ନାହିଁ । କରପନ୍ ପାହାଡ଼କୁ ହିଁ ଗଲେ ।

ଦୁଇଭାଇ କରପନ୍ ପାହାଡ଼ ଚଢ଼ି ଗୁଂଫା ପାଖକୁ ଗଲେ । ସେଇଠି ଦେଖିଲେ, ଧୂନି ଜଳୁଛି । କରମସାଇଁ ଅଛନ୍ତି ।



ଦୁଇଭାଇ କରମ୍ସାଇଁଙ୍କୁ ମୁଣ୍ଡିଆ ମାରିଲେ ।

କରମ୍ସାଇଁ ଦୁଇଭାଇଙ୍କୁ ପାଖରେ ବସାଇଲେ ସୁଖ ଦୁଃଖ ବୁଝିଲେ । ମନ ବଢ଼ିବାକୁ ପଚାରିଲେ, ଆଉ ପାହାଡ଼କୁ ଯାଅ । ଦେଖିଏ ବୁଲିଆସ ।

ଧରମ୍ ଓ କରମ୍ କହିଲେ, ନାଇଁ ପ୍ରଭୁ, ଆମେ ଆଉ କୁଆଡ଼େ ଯିବୁ ନାହିଁ ।

ଆଚ୍ଛା, ଏ ପାହାଡ଼ରେ ଅନେକ ଗୁଂଫା ଅଛି । ଯାଅ, ବୁଲିଆସ । କରମ୍ସାଇଁ କହିଲେ ।

ଦୁଇଭାଇ ହାତ ଯୋଡ଼ି କହିଲେ, ଆମେ କେବଳ ଆପଣଙ୍କୁ ଜାଣୁ । ଏଠାକୁ ଆସିଲୁ । ଦେଖା କଲୁ । ଆଉ କୁଆଡ଼େ ଯିବୁ ନାହିଁ ।

କରମ୍ସାଇଁ କହିଲେ, ପାହାଡ଼ରେ ଆହୁରି ଅନେକ ଗୋସାଇଁ ଅଛନ୍ତି । ଯାଅ, ଦେଖାକରି ଆସ ।

ଆପଣଙ୍କ ଛଡ଼ା ଆଉ କାହାକୁ ଦେଖା କରିବୁ ନାହିଁ । ଦୁଇଭାଇ କହିଲେ ।

କରମ୍ ଓ ଧରମ୍ର କଥା ଶୁଣି କରମ୍ସାଇଁ ଖୁସି ହେଲେ । କହିଲେ, ତୁମ ବିପଦ କଟିଲା । ଏଥର ଭଲ ହେବ । ଯାଅ ।

କରମ୍ ଓ ଧରମ୍ ଏହା ପରେ, ପଣସ ଗଛ, ବରଗଛ ଓ ପିପଳ ଗଛ କହିଥିବା କଥା କହିଲେ ।

କରମ୍ସାଇଁ କହିଲେ, ତୁମେ ଯାଇ କହିବ, ସେମାନେ ନିଜ ଇଚ୍ଛାରେ ସେମାନଙ୍କ ଜିମାରେ ଥିବା ଜିନିଷ ଦେଇ ଦେବେ ।

ଏହା ପରେ ଦୁଇଭାଇ ମୁଣ୍ଡିଆ ମାରିଲେ ।

କରମ୍ ସାଇଁ ଦୁଇଭାଇଙ୍କୁ ପାହାଡ଼ାର ଗୋଟିଏ ଫଳଗଛ ପାଏ ବଲେଇ ଦେବାକୁ ଆସିଲେ । ଫଳ ଗଛରେ ମିଠାଫଲ ଥାଏ ।

କରମସାଇଁ ଦୁଇଭାଇଙ୍କୁ ଫଲ ତୋଳି ନେବାକୁ କହିଲେ ।

କମମ୍ ଧରମ୍ ଫଲ ଖାଇ ଖୁସିହେଲେ । ବାଟରେ ଖାଇବେ ବୋଲି ଆଉ କିଛି ପାଖରେ ରଖିଲେ ।

ତା'ପରେ ଦୁଇ ଭାଇ ଘରକୁ ଫେରିଲେ ।



ବାଟରେ ଆଗେ ପିପଲ ଗଛ ଓ ତା'ପରେ ବରଗଛ, ପଣସ ଗଛ ପଡ଼ିଲା । ସେମାନେ ଦୁଇ ଭାଇଙ୍କ ବାଟ ଚାହିଁ ରହିଥିଲେ । ସେମାନଙ୍କୁ କରମ୍ ସାଇଁ କହିଥିବା କଥା ଜଣାଇ ଦେଲେ ।

ଗଛମାନେ ଖୁସି ହେଲେ । କହିଲେ, ଏ ଜିନିଷ ଦେବାକୁ କାହାକୁ ଆଉ ଖୋଜିବ ? ତୁମେ ଦୁଇ ଭାଇ ନିଅ ।

ଧରମ୍ କରମ୍ ସୁନା ରୁପା, ଗାଇ ବଳଦ ସଙ୍ଗରେ ନେଇ ଘରକୁ ଫେରିଲେ । କମିତିକ ବି ସେମାନଙ୍କର ହେଲା ।

ବୁଢ଼ୀମାଆ ଏକଟିଆ ବାଟ ଚାହିଁ ବସିଥାଏ । ଦୁଇଭାଇ ଫେରୁଥିବା ଦେଖି ଖୁସି ହେଲା ।

କିଛିଦିନ ପରେ ଦୁଇଭାଇ ବାହା ହେଲେ । ଆଉ ଅଭାବ, ଅସୁବିଧା କିଛି ନଥିଲା । ସେମାନେ ସୁଖରେ ରହିଲେ ।

ସବୁ ବରଷ କର୍ମା ପୂଜା କଲେ ।

